ହେଁସ ଭିତରେ ଶୀତରାତି
କୁମୁଦିନୀ ଜୀଙ୍କ କବିତାବହି

ପ୍ରକାଶକ : ଟା ଇ ମ୍ ପା ସ୍

ପ୍ରଥମ ସଂସ୍କରଣ : ଡିସେମ୍ବର ୨୦୧୫



**hensa bhitare shitarati**
*odia poetry*
by **kumudini jee**

published & printed by **timepass**
950 (P), green villa, nk marg, baramunda, bhubaneswar

cover design : saroj bal
first impression : december 2015

**₹ 95.00**

ବେଳେବେଳେ ଯା'ର ଉଷୁମ ଛାତିରେ ମୁହଁଗୁଂଜି
ନୀରବତାର ଢେଉକୁ ପାରହୋଇଯିବାକୁ ଇଚ୍ଛାହୁଏ,
ସେ ଆଉ କେହି ନୁହଁ, ମୋ ସ୍ୱର୍ଗୀୟା ମା'

ତା'ରି ସ୍ମୃତିରେ ଉତ୍ସର୍ଗକରୁଛି ଏ ବହି

# ହେଁସ ଭିତରେ ଶୀତରାତି

'ହେଁସ ଭିତରେ ଶୀତରାତି' କୁମୁଦିନୀ ଜୀଙ୍କର ଦ୍ୱିତୀୟ କବିତା ସଂକଳନ। କବିତାଗୁଡ଼ିକ ପଢ଼ିସାରିବା ପରେ, ନିଜକୁ ଏକ ଗହନ ବିଷଣ୍ଣତା ଭିତରେ ଆବିଷ୍କାର କଲି। କୁମୁଦିନୀଙ୍କର ଅଧିକାଂଶ କବିତାର ମୂଳ ଆବେଗ ବିଷଣ୍ଣତା, ଯାହାକୁ ହତାଶା ବୋଲି କହିହେବନାହିଁ। ଏହା ଏକପ୍ରକାର ଉଦାସ ବିଷଣ୍ଣତା, ବିଭିନ୍ନ ସମୟରେ, ବିଭିନ୍ନ କାରଣରୁ, ପରିସ୍ଥିତିରୁ ଓ ସଂପର୍କରୁ, ସ୍ମୃତିରୁ କେବେ ନିଗିଡ଼ିଆସୁଛି, କେବେ ପ୍ରଖର ବେଗରେ ବହିଆସୁଛି, କେବେ କୁହୁଡ଼ିଭଳି ଘେରିଆସୁଛି।

ଏପରି ଜଣେ କାବ୍ୟନାୟିକା ଅଛି ତାଙ୍କର କାବ୍ୟଚେତନାରେ, ଯେକି ପ୍ରେମରେ ପ୍ରତାରିତ ହୋଇଛି, ତଳିତଳାନ୍ତ ହୋଇଛି, କିନ୍ତୁ ପରାଜିତ ହୋଇନାହିଁ। 'ଉତ୍ତର ଫଗୁଣ' କବିତାରେ ସେ ତୀବ୍ର ଭାବରେ ପ୍ରଶ୍ନ କରୁଛି, 'ଅଲୋଡ଼ା, ଅଖୋଜା, ବର୍ଜ୍ୟବସ୍ତୁପରି / ପକେଇରଖିବାର ଇରାଦା / ମେଣ୍ଟିଗଲାନା ତୁମର ?' ଏହିପରି ଅନେକ କବିତାରେ, କେହିଜଣେ ଭଲପାଉଥିବା-ଲୋକର ସ୍ୱେଚ୍ଛାକୃତ ବିଚ୍ଛେଦ ହେତୁ ବିଷଣ୍ଣ ଏକାକୀତ୍ୱ ତାଙ୍କୁ ଆବୋରି ଧରିଛି। ନିଜକୁନିଜେ ସେ ପଚାରୁଛି, 'କେମିତି ଅଛୁ' ବୋଲି, 'ହିସାବ' କବିତାରେ। ଉତ୍ତର ମିଳୁଛି, 'ମାଘମାସ ଶୀତରାତି ପରି / ଜଡ଼ତାରେ ବିଚିଛି ମୁଁ / ତୁହାତୁହା ଏକାକୀତ୍ୱର ଶିକାର ହୋଇ / ମୋ ଅସ୍ତିତ୍ୱକୁ ନିର୍ବାଚନରେ ଜିତାଇବା ପାଇଁ।'

ବିଷାଦ ଆସିଛି ପିଲାଦିନର ସ୍ମୃତିରୁ, ମାଆ-ବାପାଙ୍କର ହଜିଯାଇଥିବା ସ୍ନେହଆଦରରୁ, ଗାଆଁ ଭିତରର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ଅନୁଭବରୁ– ଯେମିତି ଶୀତଋତୁରେ ହେଁସ ଭିତରେ ମାଆଙ୍କ ସହିତ ଶୋଇଥିବାର ମହାର୍ଘ ଅନୁଭବ। ପିଲାଦିନ ସରିଯାଇଛି, ଏକ ନିର୍ମମ ଜୀବନର ବାସ୍ତବତାର ସମ୍ମୁଖୀନ ହୋଇ ତାଙ୍କର କାବ୍ୟସତ୍ତା ପ୍ରତି ମୁହୂର୍ତ୍ତରେ ଭେଟୁଛି ପ୍ରେମହୀନତାକୁ: 'ମୁଁ କେବଳ ହସେ, ନିଜକୁନିଜେ, / ଜୀବନରେ ହାରିହାରି / ସବୁ ଥାଇ ସବୁ ହଜାଇବସେ। / ନା କେହି ସ୍ନେହରେ ହାତ ବଢ଼ାଏ / ନା ସହାନୁଭୂତିର / ମୁଁ ସ୍ୱପ୍ନରେ ସ୍ୱପ୍ନରେ ବଂଚିଥାଏ / ବରଫର ପାହାଡ଼ ଗ୍ଲାସିଅର୍ ରୂପ ନେବାଯାଏଁ।' (କୁହୁଡ଼ିଆ ଦିନସବୁ)

ଏହି ବିଷାଦ, ଆଶାହୀନତା ହେଉଛି ପ୍ରତ୍ୟେକ ସଂବେଦନଶୀଳ ମଣିଷର ଉପଲବ୍ଧି। କୁମୁଦିନୀ ନିଜଠାରୁ ନିଜର ଦୂରତ୍ୱ ବଜାୟ ରଖି, ଚିତ୍ରକଳ୍ପ ଓ ମେଟାଫର୍ ବ୍ୟବହାର କରି ଏକ ଜଗତ ସୃଷ୍ଟି କରିଛନ୍ତି– ଏକ ଏକାକୀ, ବିଷଣ୍ଣ, ସଂବେଦନଶୀଳ ମଣିଷର ଜଗତ। କିନ୍ତୁ କେତୋଟି କବିତାରେ ସେ ଏକ ଭିନ୍ନ ସଂଭାବନାକୁ ଦେଖିଛନ୍ତି ନିଶ୍ଚୟ– ତାହା ହେଉଛି, ନିଜର ବିଦ୍ରୋହର, ଦମ୍ଭର ଏବଂ ଆଶାର ସଂଭାବନା। ତାହା ହିଁ ମଣିଷକୁ ଏକ ଭିନ୍ନ ଜାଗାରେ ଅବସ୍ଥାପିତ କରେ, ଯେଉଁଠାରେ ବିଶ୍ୱାସ ରଖିହୁଏ, ଆଶା କରିହୁଏ।

'ଚାଲିଚାଲି ଅଂଟା ପିଠି / ନଇଁବା ଆଗରୁ / ବିଦ୍ରୋହର ସ୍ୱର / କ୍ଷୀଣରୁ କ୍ଷୀଣତର ହେବାଯାଏଁ / ତଥାପି ସମ୍ବର୍ଦ୍ଧନାର ହାତ ବଢ଼ିଯାଏ / ଏକ ନୂତନ ସକାଳ ପାଇଁ।'

ଏହା ହିଁ ଆଶ୍ୱାସନା– ସେହି ଅସ୍ପଷ୍ଟ, କୁହୁଡ଼ିଆ, ଅଂଧାରୁଆ, ଗହନ ବିଷାଦ, ଏକାକୀତ୍ୱ ଭିତରକୁ ଆସିବ ନୂତନ ସକାଳ; ଏହି ପ୍ରତିଶ୍ରୁତି ମଧ୍ୟ କବିଙ୍କର କାବ୍ୟଚେତନାକୁ ଆଲୋକିତ କରିଛି।

କୁମୁଦିନୀଙ୍କ କାବ୍ୟିକ ଭବିଷ୍ୟତର ସଂଭାବନା ନିମିତ୍ତ ମୋର ସମସ୍ତ ଶୁଭେଚ୍ଛା ଜଣାଉଛି।

# ନିଜକଥା

ମୋର ପ୍ରଥମ କବିତା ସଂକଳନ 'ଅଥଚ କୈକେୟୀ'ର ଦୀର୍ଘ ୯ ବର୍ଷର ବ୍ୟବଧାନ ପରେ ଦ୍ୱିତୀୟ କବିତା ସଂକଳନ 'ହେଁସ ଭିତରେ ଶୀତରାତି' ପ୍ରକାଶ ପାଉଛି। କବିତାମାନେ ଶୋଇପଡ଼ିଲେ ତାଂକୁ ଜୀବନ୍ୟାସ ଦେବାକୁ ପଡ଼େ। କାରଣ କବିତାମାନେ ଗୋଟିଏ ଗୋଟିଏ ସାରସ୍ୱତ ସୃଷ୍ଟି। ଏହା କବିର ମନକୁ ଆଲୋଡ଼ିତ କରେ। ଏମିତି କବିତାମାନେ ଶୋଇ ଯାଇଥିଲେ ମୋ ମନ ଭିତରେ। ସେମାନଂକୁ ଉଠାଇ, ସାଜସଜା କରି ତାଂକୁ ଅଳଂକୃତ କରିଦେଲି ମୋର ଏଇ କବିତା ସଂକଳନ 'ହେଁସ ଭିତରେ ଶୀତରାତି'ରେ।

ସଂକଳନଟିର ଏପରି ନାମକରଣ ପଛରେ ଯଥେଷ୍ଟ କାରଣ ଅଛି। ମୋ ପିଲାଦିନକୁ ଚାଲିଗଲେ ଛାପ୍‌ଛାପିଆ ହୋଇ ମନେପଡ଼ିଯାଏ ମୋ ଭାଇଭଉଣୀ, ମା କଥା ଏବଂ ଶୀତରାତି କଥା। ପାରିବାରିକ ସ୍ଥିତି ସ୍ୱଚ୍ଛଳ ନଥିବାରୁ ଶୀତଦିନେ ମା' ଆମକୁ ହେଁସ ଘୋଡ଼େଇ ଶୁଆଇ ପକାନ୍ତି। ମୁଁ ଅଣନିଃଶ୍ୱାସୀ ହୋଇଗଲେ ବି ମା'ର ବାସ୍ନା ଭିତରେ ପୁଣି କଡ଼ ମୋଡ଼ି ଶୋଇପଡ଼େ। ସେଇ ହେଁସ ଆଉ ମା'ର ବାସ୍ନା ମୋ ମନକୁ ବହୁତ ଆଲୋଡ଼ିତ କଲା; ଯା ଫଳରେ ଲେଖିବସିଲି 'ହେଁସ ଭିତରେ ଶୀତରାତି'।

**କୁମୁଦିନୀ**

# ତୃତୀୟପୁରୁଷ ବହୁବଚନ

ତୁମେ ଯାହା
କହିବାକୁ ଚାହିଁଲ
କହିପାରିଲନି

ତମେ ଯାହା ବୁଝିଲ
ବୁଝେଇ ପାରିଲନି

ସମୟର ଅନ୍ତରାଳେ ମୁଁ
ପାଇଗଲି ରାହାଟିଏ

ତୃତୀୟପୁରୁଷ ବହୁବଚନର
ଆସନରେ
ସେ, ସେମାନେ,
ଇତ୍ୟାଦିମାନଙ୍କ ଗହଣରେ ।

ତୁମେ ସିନା
ବର୍ତ୍ତମାନକୁ ଛୁଇଁ ପାରିଲନି,
ତୁମ ଅତୀତର
ସ୍ମୃତିଛୁଆଁରୁ ବର୍ତ୍ତିପାରିଲନି,
ମୁଁ କିନ୍ତୁ ଠକିଗଲି
ଅତୀତକୁ ଭୁଲିଯାଇ
ବର୍ତ୍ତମାନ ସହ ଆଖିବୁଜି
ସମୟ ବିତାଇବାରେ ।

କଣ ପାଇଲି ?

ମୁଁ ହୋଇଗଲି କେବଳ
ଇତ୍ୟାଦିମାନଙ୍କ ମଧ୍ୟରୁ ଜଣେ !

# ପୁନର୍ଜନ୍ମ

ତୁମେ ମର୍ଫି ରେଡିଓର
ଭଲ୍ୟୁମ୍ ବଢେଇଦେଲ
ମୋ-ତୁମ ଭିତରର ଦୂରତାକୁ
ବଢ଼େଇଦେଲ
ମୁଁ ପୁତ୍ରହରା କପୋତୀ ପରି
କୁଁ କୁଁ ହୋଇ ରହିଗଲି ।

ଚା' କପ୍‌ରେ
ଝଡ଼ ଉଠେ ବୋଲି ଜାଣିଥିଲି
ହେଲେ ପ୍ରତିକାର ଜଣା ନଥିଲା ।

ଉଠିଲା ଢେଉ,
ବାଲିଚରାରେ ଆତ୍ମବିସର୍ଜନ କଲି
ପାଖାପାଖି ଶହେ ଗଜ ଦୂରରେ

ଲାଭାର ଉଦ୍‌ଗୀରଣ,
ଆଉ କୁଡ଼କୁଡ଼ ବରଫର ପାହାଡ଼।
ବିଚିତ୍ର ଏଠି ମୋ ନିରାପତ୍ତା
ଅଭିମାନ ମଦରେ
ଉନ୍ମତ୍ତ ଏଠି ସଭିଏଁ
ସରୋବରର କର୍ଦ୍ଦମମୟ ଜଳରେ
ଚକୋର କି ରହେ ?

ଡର ମୋର,
କାଳେ ପୁଣ୍ୟ କ୍ଷୀଣ ହେଲେ
ତୁମେ ସାମ୍ରାଜ୍ୟ ବିସ୍ତାର କରିଯିବ
ମୁଁ ରାସ୍ତାରେ
ଫୋପଡ଼ା ଜରିପରି
ବେଳେବେଳେ ଉଡୁଥିବି ନଚେତ୍
ପୁନର୍ଜନ୍ମ ପାଉଥିବି।

# ରାସ୍ତା

ଏମିତିକା କେଉଁ କାଳୁ
ପଡ଼ିଛୁ ଏଠି ତୁ
କେବେ ତୁ କହିନୁ କାହିଁ
ତୋ ଧୂଳିମଳିର କାହାଣୀ ?

ସଦାବେଳେ ସହିଛୁ ତୁ
ସର୍ବଂସହା ହୋଇ
କେତେ ତୋତେ ଜରାବ୍ୟାଧି
କାବୁ କି କରିନି !

ଫଗୁଣର ଅବିର ତୋ
ଦେହରେ ମିଶିଛି
ବୈଶାଖର ତାତି ବାଲି
ତୋ ଦେହରେ ସିଝିଛି ।

ଶ୍ରାବଣର ସୁନାମି ଝଡ
ତୋ ଦେହରେ ବହିଛି
ଆଶ୍ୱିନର ମାଇଥଣ୍ଡା
ତୋ ଦେହରେ ଚରିଛି ।

କାହିଁ କେବେ କାହାକୁ ତୁ
ସାକ୍ଷୀ ତ କରିନୁ
ସାକ୍ଷୀ ହୋଇ ରହିଅଛୁ
କାହାକୁ ତୁ ଭୁଲିନୁ ।

# ଇଚ୍ଛାର ଇସ୍ତାହାର

ଛାଇଛାଇ ଖରାବେଳେ
ଧୁ ଧୁ ଜହ୍ନରାତି,
ଅତିଥି ଭଳି
ଭାବର ପ୍ରକାଶ ନିକାଶ
ସବୁ ଅତର୍କିତ ଆସିବା ଯିବାରେ
ଆଉ ବଂଚିବାର ସଂଗ୍ରାମରେ
ଗିରଫ ଶିକାରୀ ମୁଁ।

ଚାଲିଚାଲି ଅଂଟା ପିଠି
ନଇଁବା ଆଗରୁ
ବିଦ୍ରୋହର ସ୍ୱର
କ୍ଷୀଣରୁ କ୍ଷୀଣତର ହେବାଯାଏଁ
ତଥାପି ସମ୍ବର୍ଦ୍ଧନାର ହାତ ବଢ଼ିଯାଏ
ଏକ ନୂତନ ସକାଳ ପାଇଁ।

# ହଜିଯାଇଥିବା ମୁହଁମାନେ

ମନର ଚିତ୍ର ଆଉ
କାନଭାସ୍ ଚିତ୍ର ଭିତରେ
ପାର୍ଥକ୍ୟର ଦ୍ୱନ୍ଦ୍ୱରେ
ଅଧା ପେଣ୍ଟିଂ ପରି
ଅସ୍ପଷ୍ଟ ହୋଇଯାନ୍ତି ମୁହଁମାନେ...

ଝାଳବୁହା ପୁଞ୍ଜିର
ପିରାମିଡ୍ ଉପରେ
ଗୋଲାପୀ ଅତରକୁ ଫିଙ୍ଗିଦେଇ
ଭୟରେ ସାମ୍ନାକୁ ଆସନ୍ତିନି
କାଳେ ଧରି ପକେଇବି ମୁଁ।

ସଂପର୍କର ସୌଦାହାଟ ଆଜି
ଶୁଖିଲା ନଈ

ଏନ୍ତୁଡି ଶାଳାର ପାଉଁଶ ଆଜି
ଇତିହାସ
ଅଲକ୍ଷ୍ୟରେ, ଅଜାଣତରେ
ଖେଳୁଛି ଢେଉ
ବାରମ୍ବାର ଉଙ୍କିମାରି
ଉଭେଇ ଯାଉଛି ।

ଆବେଗ ଫେରିଆସୁଛି
ପ୍ରତିଧ୍ୱନି ହୋଇ
ମନର ବଖରାରେ ହଜାଇଥିବା
ମୁହଁମାନଙ୍କୁ ନେଇ ।

# ନିକିତି ତଉଲ ସାନ ବଡ଼କୁ

ଋତୁ ବଦଳିଲା ପ୍ରୀତି ବଦଳିଲା
ବଦଳି ବି ଗଲା ଦିନ
ଦିନ ସରିଗଲା କଥା ରହିଗଲା
ବଦଳିଲା ନାହିଁ ମନ ।

ଆସିଲେଣି କେତେ ଗଲେଣି ବି କେତେ
ହିସାବ ରଖୁଛି କିଏ
କିଏ କାନ୍ଦେ ଏଠି କିଏ ହସେ ପୁଣି
ନିଜକୁ ନିଜେ ବୁଝାଏ ।

ପାହାନ୍ତି ପରର ପାହାନ୍ତି ତାରା ସେ
ଖୋଜୁଖୋଜୁ ଯାଏ ହଜି
ହଜିଲା ଜିନିଷ ମିଳେ ଯେବେ ପୁଣି
ବସେ ମହାରାଣୀ ସାଜି ।

ମୁକୁତା ପରିକା ଝଟକୁ ଥାଏ ସେ
ଗୁଣରେ କେ ହେବ ସରି
ସରିଗଲେ ପଥ ଝରିଗଲେ ଲୁହ
ତୁଳା କି ହୋଇବ ଭାରି ?

ପବନ ବହିଲା ମେଦିନି ଥରିଲା
ହେଲା ନାହିଁ କିଛି ତାର
ନଈରେ ମଧୁର ଜଳ ପାଇ ସୁଦ୍ଧା
ହେଲା ସେ ତୁଠ ପଥର ।

## ଭଗ୍ନ ସୂତା

ବେଳେବେଳେ ଇଚ୍ଛାହୁଏ
ସାହାଡ଼ାସୁନ୍ଦରୀ ଗପର
ସତ୍ୟତାକୁ ଛୁଇଁବାକୁ
ଗଛ ଫାଟିଯାଉ ଅବା ଭୂଇଁ ଫାଟିଯାଉ
ଫଟା ଭୂଇଁରେ ପଶିଯିବାକୁ।

ବେଳେବେଳେ ଇଚ୍ଛା ହୁଏ
ସଂଧ୍ୟାର ସଂଜବତୀ
ସକାଳେ ଜାଳିବାକୁ
ସେଦିନର ଅନ୍ଧାରରେ, ହେଉ ଅବା ରାତିର
ସବୁ ବ୍ୟତିକ୍ରମ ରାସ୍ତାରେ ଯିବାକୁ।

ବେଳେବେଳେ ଇଚ୍ଛାହୁଏ
ପିଲାଦିନ ଧୂଳିଖେଳ

ବଢ଼ିଲା ବୟସରେ ଖେଳିବାକୁ
ଅବୁଝା ମନର ଗୋଡ଼ କଚଡ଼ାକୁ
ମା ଛାତିରେ ଉଜାଡ଼ି ଦେବାକୁ ।

ବେଳେବେଳେ ଇଚ୍ଛାହୁଏ
କବର ଖୋଲି ଖୋଜିବାକୁ
ଆତ୍ମୀୟମାନଙ୍କ ମଲାଦେହ,
ପୁରାଣ ପୃଷ୍ଠାର ମନ୍ତ୍ରପାଣି ସିଂଚି
ସେମାନଙ୍କୁ ଜିଅନ୍ତା ଦେଖିବାକୁ ।

# ବରଗଛ

ତୁମେ ସିନା ମୋତେ ପଙ୍ଗୁ କରିଦେଲ
ପାରିଲିନି ଆଉ ଚାଲି
ଉଡ଼ନ୍ତା ଚଢ଼େଇ ପାଖେ ଉଡ଼ିଗଲେ
ଅନେଇ ରହିଲି ଖାଲି ।

ଆଖିରେ ମୋହର ଆଖିଏ ଲୁହ ଯେ
ପାରୁନାହିଁ କିନ୍ତୁ କାନ୍ଦି
ଲୋଟଣି ପାରାଟେ ସାଜି ବସିଅଛି
ମିଛମାୟାରେ ମୁଁ ଛନ୍ଦି ।

ତୁମ ଛାଇ ମୋତେ ଛାଇ ସିନା ଦେଲା
ଦେଲାନି ବଳ କି ବେଳ
ତୁମେ ସିନା ମହାଦ୍ରୁମ ସାଜିଗଲ
ବଢ଼ିଲାନି ମୋର ମୂଳ ।

ଉଠୁଉଠୁ ଆଉ ଉଠି ପାରିଲିନି
ଭାଙ୍ଗିଗଲା ମୋର ଅଂଟା
ସପନ ମୋହର ସପନେ ରହିଲା
ପାଦରେ ପଶିଲା କଂଟା ।

ପାଦତଳ ଘାସ ସାଜି ରହିଗଲି
ତୁମକୁ ଦେଉନି ଦୋଷ
ପାରିଲିନି ମୁହିଁ ଆକାଶକୁ ଛୁଇଁ
ରହିଗଲା ଅବସୋସ ।

କାଳର କୋଳରେ କେବେ ଶୋଇଯିବି
ଚିହ୍ନବର୍ଣ୍ଣ ଯିବ ଚାଲି
ଅସ୍ତିତ୍ୱ ମୋହର ପ୍ରଶ୍ନବାଚୀ ହେବ
ଯାଇଥିବେ ସବୁ ଭୁଲି ।

# ଆତ୍ମବିସର୍ଜନ

ଆତ୍ମଚିନ୍ତନର ଅଭିଭାବକ ସାଜି
ଲାଠି ପ୍ରହାରକୁ ସହ୍ୟ କରିବା କଣ
ବଳି ପଡ଼ିଲା ତୁମକୁ ଯେ
ତୁମେ ଆତ୍ମବିସର୍ଜନର
ସମୀକ୍ଷା ପାଇଁ ଲାଗିପଡିଲ ?

କେଉଁଠୁ ଆସିଲା ସେ
ଦୁର୍ବାଦଳର ସହର
ଭରିଦେଲା କୁଆର ଆଉ
ତମସାଛନ୍ନ ହେଲା ସାରା ସଂସାର ?

ନିଆଁ ଝୁଲର ଗହଣାରେ ଲୁଚିଥିଲା
ଅରଣ୍ୟର ସବୁଜ ମୁଖମଣ୍ଡଳ
କୃଷ୍ଣଚୂଡ଼ା ଆଉ ତୁମ ଓଠର ଲାବଣ୍ୟ

ଯନ୍ତ୍ରଣାର ଢେଉସବୁ ଅସ୍ତବ୍ୟସ୍ତ
ଜାଣିଶୁଣି ସମସ୍ତେ ଫେରାର୍
ହାତ ପାଦରେ ଶିକୁଳି ଆଉ
ମୃତ୍ୟୁର ଶୀତଳ ଉପତ୍ୟକାରେ
କଠୋର ଚାବୁକ୍ ତୁମର ।

# ଉତ୍ତର ଫଗୁଣ

ଅଲୋଡ଼ା, ଅଖୋଜା, ବର୍ଜ୍ୟବସ୍ତୁ ପରି
ପକେଇ ରଖିବାର ଇରାଦା
ମେଂଟିଗଲାନା ତୁମର ?

ବର୍ତ୍ତମାନକୁ ଠେଲିଦେଇ
ଅତୀତକୁ ବର୍ତ୍ତମାନ ଉପରେ ବସାଇ
ଖୁସିତ ତୁମେ ?

ଭାରସାମ୍ୟ ହରାଇଦେଲି ମୁଁ
ଦରକାରଠାରୁ ଓଜନଦାର ଭାର ଯେବେ
ମୋ କାନ୍ଧରେ ବସାଇଲ ତୁମେ
ଆଉ ପ୍ରୀତିର ସହରରେ ତୁମେ
ନିଜେ ହଜିଗଲ
ତୁମର ବା ଭୁଲ କଣ ?

ଏତେ ଅନିସନ୍ଧିତ୍ସୁ ହେବାର ଫଳ
ମୁଁ ପାଇଗଲି ।

ଜାଣିନଥିଲି ତୁମ
କାର୍ପଣ୍ୟର କାରଣ
ସ୍ପଷ୍ଟ କରିଦେଲ ତୁମେ
ଉତ୍ତର ଫଗୁଣର ଦାୟାଦ ମୁଁ ଯେ
ବୟସକୁ କଣ
ଜିଣି ପାରିଥାନ୍ତା କିଏ ?

## ସୁନା ଛାଂଚ

ହୃତ୍‌କଂପନର ଜୁଆରରେ
ଭଙ୍ଗା ପଡ଼ିବାବେଳକୁ
ଆଖି ବୁଜିଦେଇ
ମୃତସମ ଶୋଇଗଲି ଯେ
ଆଖି ଖୋଲିଲା ପରେ
ସାରା ଦୁନିଆଟା ଖାଁଖାଁ ଲାଗିଲା
ସୁନାମି ପରର ଦୁନିଆ ପରି ।

ମୁଁ ଏଠି ଏକାକୀତ୍ୱକୁ
ଜାହିର କଲାବେଳେ
ଦୂରେଇଯାଇ ସମସ୍ତେ
ମୁରୁକି ହସୁଥିଲେ
ତୁମେ, ସେ, ସଭିଏଁ
ପ୍ରତିଷ୍ଠିତ ହୋଇସାରିଥିଲ ପରା !

ମୁଁ କିନ୍ତୁ ନଛୋଡ଼ବନ୍ଧା ମୋର
ସାତସିଆଁ ଚିରା କନ୍ଥାର
ପୃଥିବୀ ଭିତରେ

କେବେଠୁଁ ଆଶାସବୁକୁ
ଜଡ଼େଇ ଧରିବା ଛାଡ଼ିଦେଇ
ସ୍ୱପ୍ନର କୋଠରୀରେ
ତାଲା ପକେଇଦେଇଛି ।

ମୋ ସୁନେଲି ରଙ୍ଗର
ଅସ୍ତିତ୍ୱ ଉପରେ
ସେମାନଙ୍କର ବହୁତ ଲୋଭ
ଆଉ ଈର୍ଷା...

ହେଲେ, କେହି ଜାଣନ୍ତିନି
ପିତଳ ଉପରେ ଯେ
ସୁନାର ଛାଂଚ ବୋଲି ।

# ହେଁସ ଭିତରେ ଶୀତରାତି

କାହିଁ ଆଜି ମା' ପଣତରେ
ମମତାବୋଳା ଗନ୍ଧ ଆଉ ଅଛିଣ୍ଡା ସ୍ମୃତି !
ଗାଁ ବାରିପଟର
ଖଟାମିଠା ବରକୋଳିର ସ୍ୱାଦ
ଆଉ ବଣମାଳର ଅତୁଟ ସ୍ନେହ ?

ପେଟ ଆଜି ପୂରେନା ତୃପ୍ତିରେ, ନିଃଶବ୍ଦରେ
ରୁଣୁଝୁଣୁ ହୋଇ ବ୍ୟସ୍ତ କରିପକାଏ
ଚାନ୍ଦମୁହିଁ କାଳିଗାଈର କ୍ଷୀର
ଦୁର୍ବଳିଆ ଚେହରାରେ ସୁଧାର ଆଣିଲା ପରି
ଅପ୍ରତ୍ୟାଶିତ ଝଡ଼ରେ ଗଛ ଥରିଉଠେ

ମାଟିର ଅଗଣା,
ଆଖିର ଲୁହବୁନ୍ଦାରେ ଭିଜିଯାଏ

ବାୟାଚଢ଼େଇ ବସା ଦୋହଲିଯାଏ
ମା'ର ଛାତି ତଳୁ
ଅତଡ଼ା ଖସିଗଲା ପରି...

ବିଚିତ୍ର ଏ ପ୍ରଭଞ୍ଜନ !

ଛାତିର ଏ ମାଟିପିଣ୍ଡାରେ ଦୁଃଖର ପାହାଡ଼
କଚାଡ଼ି ହେଇପଡ଼େ
ଆଜି ମାଆଠୁ ଦୂରତା
ନଦୀର ଏପଟ ସେପଟ ନୁହେଁ
ଆକାଶ ଆଉ ପୃଥିବୀର ଦୂରତା ।

ଏଣିକି ଆଉ ବୁଝିବାକୁ ବାକି ରହେନା
ଜାଡ଼ଶୀତ ଜାବୋଡ଼ି ଧରେ
ରାତିର ଗନ୍ଧକୁ
ହେଁସ ଭିତରେ
ବହଳିଆ ଶୀତରାତି ଲୁଚିଥାଏ
ହେଁସ ଭିତରେ
ହେଁସେ ଶୀତ ମହକୁଥାଏ
ଅଣନିଃଶ୍ୱାସୀ ହୋଇ ମୁଁ
ଖୋଜୁଥାଏ ଏଠି ସେଠି ମା'କୁ
ଆଉ ଛାଡ଼ି ଯାଇଥିବା ମା'ର ସ୍ମୃତିକୁ ।

# ବିକ୍ଷିପ୍ତ ଭଗ୍ନାଂଶ

ଖସିଗଲା ହାତ ପାହାନ୍ତାରୁ
ସବୁଜ ସତେଜ ସହର ବିଡ଼ା
ମୋ ଅପାରଗତାର ଇଏ ଏକ
ଲମ୍ବା ଇସ୍ତାହାର
ତଥାପି ମୁହୂର୍ତ୍ତମାନଙ୍କୁ ମୁଁ
ଜାବୋଡ଼ି ଧରିଛି ।

ବୟସର ଡେଣାରେ
ସଂପର୍କ ମହାର୍ଘ,
ଅବଶିଷ୍ଟ ବୟସ ପାଇଁ
ମୁଁ ଆଜି ସମର୍ପିତ ।

ବିକ୍ଷିପ୍ତ ହୋଇ ପଡ଼ିଛି
ନିଷିଦ୍ଧ ହୃଦୟ

ଟଙ୍ଗେଇବାକୁ ଆଗାମୀ ସମୟରେ
ବୈଠକ ଖାନାରେ
ଆମ ଲମ୍ବା ଇତିହାସ ।

ଗାଇବାକୁ ନବାକ୍ଷରୀ ଜଣାଣ
ଅବା ବିକ୍ଷିପ୍ତ ଭଗ୍ନାଂଶ ।

# ନିନ୍ଦିତ ପ୍ରହାର

ମୋ ଇଚ୍ଛାକୁ ଶିକୁଳି ପକାଇ
କାନ୍ଧରେ ବୋହି ପାରୁନଥିବା ଭାରକୁ
ଲଦିଦେଇ ତୁମେ
ତଥାପି ଶାନ୍ତି ପାଇଲନି ।

ପ୍ରାପ୍ୟ କମ୍ ଅପ୍ରାପ୍ୟର ନିନ୍ଦା
ବଖାଣି ଚାଲିଲ
ପ୍ରକାଶ୍ୟ ଅପ୍ରକାଶ୍ୟରେ
ମୋ ଆଖିର ଲୁହକୁ ଶୁଖାଇଦେଇ
କୋହସବୁକୁ ବରଫ କରି ରଖିବାର
ଅବଦାନ ତ
ତୁମର କିଛି କମ୍ ନୁହେଁ,
ତଥାପି
ତର୍ଜମା ନକରି ଶାନ୍ତି ପାଇଲନି ।

ମୁଁ କେବେ
ମୋ ଆଖିର ଲୁହରେ ତୁମକୁ
ଗାଧୋଇଦେବାର ଦୁଃସାହସ କରିନି
ପରନ୍ତୁ ମୋ ଲୁହକୁ ମୁଁ
ନିଜେ ପିଇଛି
ସବୁ ନିନ୍ଦିତ ପ୍ରହାରକୁ
ଗରଳସମ
ହଜମ କରିଛି ।

# ଜୀବନ

ଜୀବନର ସକାଳ ବିତିଗଲା
ମା'ର କାନିପଣତରେ
ଜୀବନର ସକାଳ ବି ମରିଗଲା
ମା' ମଲା ପରେପରେ

ଜୀବନର ମଧ୍ୟାହ୍ନରେ
ଦୌଡ଼ାଦୌଡ଼ିରେ ଓସ୍ତାଦ୍ ପରି
ଜୀବନର ଦସ୍ତାବିଜ୍ ଲେଖିଚାଲିଲି ।

ହାରିଗଲି ଅପରାହ୍ନେ,
ସାମିଲ ହୋଇପାରିଲିନି
ଚାଲ୍‌ବାଜ୍ ଖଳନାୟକମାନଙ୍କ ସହ
ଚାଲି ପାରିଲିନି
ଜୀବନର ଖଣ୍ଡାଧାରରେ ।

ପଳାଶଫୁଲର ଅଭିନୟ,
ଉପରଟା ସୁନା ପରି
ଚିକ୍‌ଚିକ୍ ହୀରା ପରି ଝିଲ୍‌ମିଲ୍ !

ଏ କି ଅଭିନୟ !
ଉପରେ ଯାହାର ଏତେ
କୋମଳ ଆସ୍ତରଣ,
ଆଉ ଭିତରଟା ହଳାହଳ ?

# ଆତ୍ମସମୀକ୍ଷା

ମୁଁ କିନ୍ତୁ ବୁଝିଲା ବେଳକୁ
ପେଟେ ପାଣି ପିଇସାରିଥାଏ
ହେଲେ ମୋ ଆଖିରୁ ତୁମେ
ଠଉରେଇ ନେଲ ମୁଁ ଖୁସି ଅବା ଦୁଃଖୀ,
ମୋ ଶୁଖିଲା ଓଠରୁ ଜାଣିନେଲ
ମୋ ଜୀବନର ପର୍ଯ୍ୟାୟ।

ତୁମେମାନେ ବିଚକ୍ଷଣ ମନସ୍ତାତ୍ତ୍ୱିକ
ତଥାପି ମୋ ଆହତ ଆଖି
ଡବଡବ କରି ଚାହିଁରହେ
କାଳେ କେବେ ଦେଖିବ ସେ ସ୍ୱପ୍ନ
ମୋ ଶୁଖିଲା ଓଠ ହେବ ଗୋଲାପି
ଆଉ ମୋ ଠାକରା ଗାଲରୁ
ଉଭେଇଯିବ ବୟସର ଦାଗ।

ଏଗୁଣ୍ଡି ବନ୍ଧ ଡେଇଁଲାବେଳେ
ଭାବିଲି ଫୁଲର ଶେଯରେ ଶୋଇବି
ହେଲେ କଂଟାର ଶେଯରେ
କେବେ ଫୁଲକି ଫୁଟେ ?

କୋମଳ ଏ ମନରେ ଭରିଗଲା
ଉଦାସର ପାହାଡ
ଆଉ କଳକଳ ଝରଣା ହୋଇ ବହିଯିବାର
ଇଛାକୁ ମାରିଦେଲି ଜାଣିଶୁଣି ।

# ସପନ ଦେଶର ରାଜକୁମାର

ସପନ ଦେଶର ରାଜକୁମାର ସେ
ସପନରେ ହଜିଗଲା
ସପନରେ ପୁଣି ଦେଖାଦେବ ବୋଲି
କଥା ସିଏ ଦେଇଥିଲା ।

ନରମ କୋମଳ ଗୋଲାପ ଶେଯରେ
କବରୀରେ ଫୁଲ ଖୋସୁଥିଲା
ହରାଭରା ଧରା ଲାଜଲାଜ ହୋଇ
ଆମ କଥାସବୁ ଶୁଣୁଥିଲା ।

ନିଦ ହଜିଗଲା ସପନ ହଜିଲା
ସବୁକିଛି ଦିନେ ହଜିଗଲା
ରାତି ପାହିଗଲା କଥା ରହିଗଲା
ସ୍ମୃତି ହୋଇ ସିଏ ରହିଗଲା ।

ଅମଡ଼ା ବାଟର ପଥିକ ଏବେ ମୁଁ
ଯେବେଠାରୁ ସିଏ ଚାଲିଗଲା
ଭାବୁଛି ଖୋଜୁଛି ଝୁରୁଛି ତାକୁ ମୁଁ
ମରୀଚିକା ହୋଇ ରହିଗଲା।

ଦେଖାହେଲେ ଥରେ କାହାଣୀ ରଚନ୍ତେ
ଯେ କାହାଣୀ ଅଧା ରହିଗଲା
ଭ୍ରମ ହେଲାପରି ଦେଖାଦିଏ ସେ
ଆଖିପିଛୁଳାକେ ଲୁଚିଗଲା।

# କାଠଚୌକିର ମାଲିକ

ସ୍ତବ୍ଧତା ଆଉ ଚିନ୍ତାମଗ୍ନ
ଆଜି ଏ ଆକାଶ,
କାଶତଣ୍ଡି ଫୁଲ ଆଜି
ଅନାବଶ୍ୟକ।

ଗଙ୍ଗଶିଉଳି ଫୁଲ ଆଜି
ଝରି ପଡୁଛି ଆପେଆପେ
କେହିନାହିଁ ଆତ୍ମୀୟତାର ହାତ ବଢ଼େଇବାକୁ

ଆଜିଠୁ ଏ କାଠଚୌକିର ଆସନ
ଖାଲି ପଡ଼ିଗଲା।

ନିର୍ମଳ ଆକାଶ ପରି ସ୍ନିଗ୍ଧ,
ସମୁଦ୍ର ପରି ଗଭୀର,

ଫୁଲ ପରି ସରଳ,
ରାଜା ହରିଶ୍ଚନ୍ଦ୍ର ପରି କାଙ୍ଗାଳ...
କେହି ନୁହେଁ ସେ ଏ ଖାଲି ପଡିଥିବା
କାଠଚୌକିର ମାଲିକ।

କାଠଚୌକିର ମାୟାରେ
ଆଜି ସଭିଏଁ ଚିନ୍ତିତ
ଏ କାଠଚୌକିରେ କେହି ବସିବେ
ଅବା
ଖାଲି ରଖିବେ ?

## ଜୁଇ

ବାପର ଜୁଇ ଜଳୁଛି ଯେ ଲିଭୁନି
ତା ରକ୍ତାଭ ଆଭା
ଖାଲି ମନକୁ କ୍ଷତ ବିକ୍ଷତ କରୁନି
କହୁଛି-
ଦୁନିଆଟା ଏଇମିତି ଜୁଇସମ
ଦୁନିଆକୁ ବୁଝ୍ ଦେଖ୍ ଶିଖ୍
ହେଲେ ପାଟି ବନ୍ଦ୍ କର
ଝରକା ବନ୍ଦ୍ କଲାପରି
ଶୀତଦିନ ରାତିରେ,
ପାଟି ଖୋଲ୍
ଝରକା ଖୋଲିବା ପରି
ବସନ୍ତ ଋତୁରେ।

# ସମୟର ଆବର୍ତ୍ତନରେ ତୁମେ

ମୁଁ  ମାଗିଲି ହାତେ ପ୍ରତିଶ୍ରୁତି
ଆଉ ତମେ ଦେଲ ଚାଖଣ୍ଡେ
ମୁଁ ଖୋଲିଦେଲି ମୋ ଭିତରର
ଅତୀତ ଓ ବର୍ତ୍ତମାନକୁ
ତୁମ ଛମ୍‌ଛମ୍ ବର୍ଷାର ଆବର୍ତ୍ତନରେ।

ମୁଁ ଖୋଜିଲି ଭିଜାମାଟିର ଆତ୍ମୀୟତାକୁ
ଖୋଜିଲି  ପିଲାବେଳ,
ମା'ର ଅଧୁରା ଗପକୁ
ଅଭିଶପ୍ତା ସାହାଡାସୁନ୍ଦରୀକୁ
ପୁଣି କେତେବେଳେ ଶୋକସନ୍ତପ୍ତା କପୋତୀ ମା'କୁ

ମୁଁ ବାହାରିଗଲି ମୋ
ଇଚ୍ଛାମାନଙ୍କ ଖୋଳପାରୁ

ନିରାପଦ ଦୂରତାରେ
ଠିଆହେଲି ତୁମଠାରୁ
ଆପେଆପେ ଲିଭିଯାଉଥିଲା
ମୋ ଭିତରର ଲାଭାର ଉଦ୍‌ଗୀରଣ
ଲିଭିଯାଉଥିଲା
ତୁମ ଯିବା ଆଉ ଆସିବାର ପଦଚିହ୍ନ।

# ଶାପମୁକ୍ତ

ମୁଁ କାଳେ ଲୁଚାଇ ପାରେନା
ମୋର ହୋଇ ରହିଥିବା ଦୁଃଖକୁ
ସ୍ୱପ୍ନସବୁ ବୁଣିଦିଏ
ଅଯତ୍ନରେ ସ୍ମୃତିର ଉହାଡ଼ରେ
ସୁନ୍ଦର ପୃଥିବୀକୁ ମନଭରି ଭଲପାଏ
ଗୁଣୁଗୁଣେଇ ଗୀତଗାଏ
ଭରସା ଲଗାଏ ନିଃଶ୍ୱାସପ୍ରଶ୍ୱାସର ବିଶ୍ୱାସରେ
ଅଧାଗଢ଼ା ଜହ୍ନର
ଅଧା ଛାଇ ଓ ଆଲୁଅରେ ।

ଶାପମୁକ୍ତ ହୋଇ ମୁଁ ଖୋଜେ
ନିରୋଳା ମୁହୂର୍ତ୍ତ
କେତେବେଳେ ଅଫିସ୍‌ର
ଗଦାଗଦା ଫାଇଲ୍ ଭିତରେ

ତ ପୁଣି କେବେ
ସଜଳ ବର୍ତ୍ତମାନରେ
ଖୋଲିଯାଏ ବନ୍ଦୀଶାଳା
ଖୋଲିଯାଏ ବେଡ଼ି
ଶାପମୁକ୍ତ ମୁଁ ଆଜି
ଆନମନା ହୋଇଯାଏ
ଆକାଶର ରଂଗର ଅବା
ସାଗର ଢେଉରେ ।

# ଅସ୍ପଷ୍ଟ ଦେବତା

କହିବା ବନ୍ଦ କରି ଦେଇଛି ମୁଁ
ନିର୍ଜିବ ପଥର ଯାହାକୁ କହନ୍ତି
ଦେବତା ଠାକୁର,
ତାଙ୍କ ପାଖେ ଅଳି ଅର୍ଦ୍ଦଳି
ହା ହୁତାଶମୟ ଅସହାୟତାର ନିବେଦନ
ପୁଣି ପରସ୍ତ ପରସ୍ତ ବିପର୍ଯ୍ୟୟର କାହାଣୀ
ସବୁ ଖୋଲିଦେଇ ବସିଛି ମୁଁ
କୌଣସି ଏକ ନିର୍ଯ୍ୟାସର ଅପେକ୍ଷାରେ।

କାହିଁ କିଛି ତ କହୁନାହାନ୍ତି ଠାକୁରେ
ଅସ୍ପଷ୍ଟ ଲାଗୁଛି ଚେହେରା
ଚନ୍ଦନ, ଫୁଲ, ଧୂପ, ଦୀପ...
ସବୁତ ଦେଉଛି
ନିଇତି ସ୍ନେହରେ, ସରାଗରେ

ମୁଠାମୁଠା ସୁନେଲି ଅବିରରେ
କରିଛି ସାଦର ସଂଭାଷଣ ।

କିନ୍ତୁ କାହିଁକି ଦେବତା ଆଜି ଅସ୍ୱଷ୍ଟ
କାହିଁକି ଦୁନିଆର ଶତ୍ରୁ ଶିବିରରେ
ଖେଳିଯାଉ ନାହିଁ
ଶସ୍ୟଶାମଳା ପ୍ରେମର ସାଗର
ଏଠି କାହିଁକି ଅଭୟାଶ୍ରିତ କୋଳ
ସୁଦୂର ପରାହତ ?

ଜବାବ ଦେବେକି
ଅସ୍ୱଷ୍ଟ ଦେବତା ?

ଉଦ୍‌ଭ୍ରାନ୍ତ ପଶୁ ଭଳି
ମାଡ଼ି ଚାଲିଛି ମୁଁ
ଆଉ ମୁଁ ଖୋଜୁଛି
ମଣିଷ ଭିତରେ ଅସ୍ୱଷ୍ଟ ଦେବତା ।

# ହିସାବ

ମୁଁ ମୋତେ ପଚାରିଲି
'କେମିତି ଅଛୁ' ବୋଲି

କହିଲା- ମାଘ ମାସ ଶୀତରାତି ପରି
ଜଡ଼ତାରେ ବଂଚିଛି ମୁଁ
ତୁହାତୁହା ଏକାକୀତ୍ୱର ଶିକାର ହୋଇ
ମୋ ଅସ୍ତିତ୍ୱକୁ ନିର୍ବାଚନରେ
ଜିତେଇବା ପାଇଁ।

ପୁଣି ମୁଁ ପଚାରିଲି ମୋତେ
'ତୁ ଜୀବନରେ ପାଇଲୁ କଣ' ?

କହିଲା- ବୈଶାଖର ଝାଂଜି ଖରାରେ ସିଝିଥିବା
କଳା ଚମଡ଼ାର ମଣିଷଟା

କଣ ପାଇବ ହିସାବ ଜୀବନରୁ ?
ଖାଲି କାଂଗାଳ ହୃଦୟର
ଝରିଯାଇଥିବା ସ୍ୱେଦଯୁକ୍ତ ଲୁହ ଦୁଇବୁନ୍ଦା ।

ହଠାତ୍ ମୁଁ ମୋତେ
କାବୁ କରିନେଲି ମୁଁ
'ମୁଁ' ସହିତ ମୋର ଅଂତରଂଗତା
ବଢ଼େଇଚାଲିଲି

ସେଦିନ, ଯେଉଁଦିନ ରାସ୍ତାପରି ସମସ୍ତେ
ମୋତେ ଅଣଦେଖା କଲେ;
ମୁଁ ମୋ କୋହର ବୋକଚା କାନ୍ଧରେ ପକାଇ
ଅଣଚାଷ ବହୁଥିବା ଜୀବନଟାକୁ
କୁଂଢେଇ ଧରିଛି ଆଜି ଯାଏ ।

# କୁହୁଡ଼ିଆ ଦିନସବୁ

ଖପରାକାତି ଖେଳରେ ତୁମେ ଜିତୁଥିଲ
ଆଉ ମୁଁ ହାରୁଥିଲି,
ସିନ୍ଦୁରା ଫାଟିବା ଆଗରୁ ନିଦ ଭାଂଗୁଥିଲା
ପୁଚିଖେଳ କି ବୋହୂଚୋରି ଖେଳର
ଯୋଜନା ଚାଲୁଥିଲା।

ସେ ସବୁ କୁହୁଡ଼ିଆ ଦିନପରି
ଅନ୍ଧାରିଆ ଦିଶେ
ଆଜି ଆର୍ଥ୍ରାଇଟିସ୍ ପରି
ରୋଗସବୁ ବସା ବାଂଧେ।

ମୁଁ କେବଳ ହସେ ନିଜକୁ ନିଜେ
ଜୀବନରେ ହାରିହାରି
ସବୁଥାଇ ସବୁ ହଜାଇ ବସେ।

ନିଃସଂଗତାକୁ ଭଲପାଇବାରେ
କ୍ଷତି କଣ ଯେ ?
ମୁକୁଟ ମଣିର ସମ୍ମାନରେ
ମୋର ଯାଏ କେତେ ଆସେ କେତେ ?

ଧାରାବାହିକ ଭାବେ ମୁଁ
ପଂଜାଏ ଶକ୍ତ ଧକ୍‌କାର
ଆବାହନିରେ ସମୟ ବିତାଇ ଚାଲେ ।

କାହାଠୁଁ କିଛି ଆଶା ନକରି
ଆଖିର ଲୁହ ଆଖିରେ ମାରି
କାହାର ଅଭିଶାପକୁ ଆର୍ଶୀବାଦ ମନେକରି
ଚାଲୁଛି ମୁଁ
କୁହୁଡିଆ ଦିନ ସବୁକୁ ପଛ କରି ।

## ମରୁଭୂମିରେ ଝଡ଼

ହଲୁଥାଏ ପେଣ୍ଡୁଲମ୍ ପରି
ଶେଷ ନିଷ୍ପତ୍ତି ଯାଏ
ନିଜକୁ ନିଜ ଭିତରେ ଚାପିରଖି
ଚେନ୍ ଭଳି ଛନ୍ଦାଛନ୍ଦି ହୋଇଯାଏ।

ବାଦଲ ଫାଟି ଆକାଶରୁ
ଝରିଆସେ ବର୍ଷା
ହତାଶାର ମହାବାତ୍ୟା
ଅଂକାବଂକା ରେଳ ଡପ୍ପା ପରି
ଦିଗନ୍ତ ବ୍ୟାପିଯାଏ।

ଆଖି ପାଏନା
ବରଫ ପାହାଡ଼ରେ ଛିଡା ହୋଇ
ସୂର୍ଯ୍ୟକିରଣକୁ ନିଘା କରିବାରେ

ଭାରସାମ୍ୟ ହରାଏ
ଦୁର୍ବଳ ସମୟକୁ ସାମ୍ନା କରିବାକୁ
ବରଫ ପାହାଡ଼ ତରଳିଯାଏ
କାମନାର କଳାରେ
କାଳଗର୍ଭରେ ମୁଁ ଡୁବିଯାଏ।

କଷଟି ପଥରରେ ସୁନା ପରଖୁ ପରଖୁ
ଘୃଣାର ଚକ୍କରରେ ଥକିଯାଏ
ହଠାତ୍ ମରୁଭୂମିର ଝଡରେ
ମୁଁ ଆକ୍ତାମାକ୍ତା ହୋଇଯାଏ।

ନା କେହି ସ୍ନେହର ହାତ ବଢ଼ାଏ,
ନା ସହାନୁଭୂତିର
ମୁଁ ସ୍ୱପ୍ନରେ ସ୍ୱପ୍ନରେ ଜିଇଥାଏ,
ବରଫ ପାହାଡ଼
ଗ୍ଲାସିଅର ରୂପ ନେବାଯାଏ।

# ମୀମାଂସା

ପବନରେ ଭାଂଗିପଡୁଥିବା ଗଛପତ୍ର ପରି,
ତୁମେ ମୁଁ ଭାଂଗି ପଡ଼ିଲେ
ନିଜ ଛବି ନିଜେ ଆଂକିଲେ
ସମୟର ପୃଷ୍ଠାରେ,
ଭଂଗା ପେଁକାଳି ପାଇଁ
ଅଳିଅର୍ଦ୍ଦଳି କରିବାର ହିସାବନିକାଶ
ଏ ସବୁତ ପୁରୁଣା କଥା।

ଅଭିଶପ୍ତ ଗନ୍ଧର୍ବର କନ୍ୟା ପରି
ଅଭିଶପ୍ତା ମୁଁ
ଉଲ୍ଲାସର ଦିଗ୍‌ବଳୟରେ ଉଚ୍ଚାଟ ଯୌବନ
ମୁଁ କେବେକେବେ ଖରାରେ ସିଝିଯାଏ
ତ ପୁଣି ଫାଟିପଡେ ସମୟେ ଅସମୟେ।

# ଶୂନ୍ୟଗର୍ଭା

କେଉଁଠି କିଛି ନଥିଲା ବେଳେ
ଖଂଡେ ଛଳନାର ଭସାବାଦଲ ପରି
ସଇତାନ୍ ହାତେ ଝରିଗଲା
କୁନିକୁନି କଳିକାର ପ୍ରତୀକ୍ଷିତ ସୁବର୍ଣ୍ଣ ସକାଳ।

ସମୟର ଆହ୍ୱାନରେ
ଶବ୍ଦର ତରଂଗାୟିତ ପ୍ରତିଧ୍ୱନି
ଆଉ ଆକୁଳ ପ୍ରାର୍ଥନା
'ମା ମୋତେ ରକ୍ଷାକର'ର ଆୱାଜରେ
ପୃଥିବୀର ହୃଦୟ ମନ୍ଥିଗଲା
ତା କୁନି ପ୍ରଜାପତିର ପ୍ରତୀକ୍ଷାରେ।

ଭାବିଲା–
ଫେରିବା ରାସ୍ତାଟା ଏତେ ଲମ୍ବା ?

କେଉଁଠୁ ଆରମ୍ଭ ଅବା
ଶେଷ କେଉଁଠାରେ ?
ଆସିବନି କେବେ ଫେରି
ଆମ ସୁନାଝିଅ ଲୁଚକାଳି ଖେଳିବାକୁ
ଲିପାପୋଛା ଘର ଅଗଣାକୁ,

ମା' ର ପଣତ କାନିରେ
ପୁଅ ଆଉ ଘସିବନି ମୁହଁ
ଆଉ କରିବନି ଅଳି ।

ଖାଲି କିଛି ସ୍ମୃତି ଆଉ ବିସ୍ମୃତିର କାହାଣୀ
ଭଂଗା ଦର୍ପଣରେ ଦିଶୁଥିବା ମୁହଁ ପରି,
ପେଶାଓ୍ୱାରର ମା' ଆଜି ଶୂନ୍ୟଗର୍ଭା
ଚାହିଁ ବସିଛି ତା କଳାମାଣିକର ପଥକୁ
ଖାଲି ଆଂଜୁଳା ଆଂଜୁଳା ଲୁହର
ଶୂନ୍ୟ ସମର୍ପଣ କରି ।

## ବତୀଘର

ନିଜକୁ ଅଂଧାର କରି
କଣ ନଦେଇଛୁ ତୁ ?

ଆଲୋକିତ କଲୁ ସାରା ଦୁନିଆକୁ
ଦେବତା ଭିତରେ ଦାନବ ଆଉ
ଦାନବ ଭିତରେ ଦେବତା
ପ୍ରେମ ଓ ଘୃଣାର ଦାନରେ ହିଁ ତ
ଏ ଜୀବନ ।

ସମୁଦ୍ର ଗର୍ଭରେ ଅମୃତ
ଆଉ ତାରି ଭିତରେ ଗରଳ
ବସ୍ତାବସ୍ତା ସୁନାବାଲି ନଦୀର ଗର୍ଭରେ
କେତେ ଉଦାର
ଆଉ କେତେ ସରଳ ।

ତଥାପି ତୋର
ଆର୍ଶୀବାଦର ହାତ
ଲମ୍ବି ଯାଇଛି ଦୂର ଦିଗନ୍ତକୁ
ନିଜର ଅସ୍ତିତ୍ୱକୁ ଭୁଲି ଯାଇ
ଭୁଲଉଛୁ ତୁ
ସାରା ଦୁନିଆକୁ ।

# ଆହୁତି

ଶୀତ ସକାଳରେ ହଜିଗଲା
ଯୋଡ଼ି ମହୁରୀର ସ୍ୱର
ତୁମେବି ତ ଥିଲ ?

ହେଲେ ଶୁଣି ପାରିଲନି
ଫୁଲର କ୍ରନ୍ଦନ
କାଂଦିକାଂଦି ଝରିଗଲା,
ଦଳିମଂଥି ହୋଇଗଲା
ମନ ଝରଣାରେ
ଶିହରିତ ହେବା ଆଗରୁ।

ତୁମକୁ ବା କଣ
ବଳେଇ ପଡୁଥିଲା ଦେବାକୁ ?
ମାଗୁ ନଥିଲା ସେ ହୀରା, ନୀଳା,

ମୋତି ମାଣିକର ପାରାବାର
ଖାଲି ଖୋଜିଥିଲା ସାହାରା ଟିକକ
ତା ଅନ୍ୟମନସ୍କତାର ମର୍ଯ୍ୟାଦାକୁ
ହରାଇବା ଆଗରୁ।

କଣ ଦେଲ ତୁମେ ?

ନା ଫୁଲମାଳ ହେଇ
କେଉଁ ଦେବତାର ଗଳାରେ
ଝୁଲି ପାରିଲା ସେ ?
ନା ଗନ୍ଧରେ ଚିରସ୍ଥାୟୀ ହୋଇ
ରହି ପାରିଲା
ଦେଇଦେଲା ସେ ଆହୁତି
ତୁମରି ଅବର୍ତ୍ତମାନରେ।

*(ଭାରତନନ୍ଦିନୀ ନିର୍ଭୟାକୁ ସମର୍ପିତ)*

# ଋତୁ ସମ୍ଭାର

**ବର୍ଷା**

ଛତା କିଣି ସାରିଲା ବେଳକୁ
ବର୍ଷାର ନାଁ ଗନ୍ଧ ନାହିଁ
କେତେ ସଂଚିସଂଚି
କରିଥିଲି ଜମାଟ ମୁଁ ରାଶିମାନଂକୁ
ଛତା ଧରି ଚାଲିବି ମୁଁ
ଝିପିଝିପି ବରଷାରେ
ପାଣି ସାଥେ ଖେଳିବି ମୁଁ,
ଭସାଇବି କାଗଜଡଂଗା
ଛୋଟଛୋଟ ନାଳ-କେନାଲରେ
କିନ୍ତୁ କାହିଁ ?
ଆକାଶରେ ଚମକୁନି ବିଜୁଳି
କି ମାରୁନାହିଁ ଘଡ଼ଘଡ଼ି
ଛମ୍‌ଛମ୍ କୁଳୁକୁଳୁ ଡାକୁନି ତ

ପାଣିର ଶବଦ
ଆମ ପାଖ କଲୋନିରେ ?

**ଶରତ**

ମାଳମାଳ କାଶତଂଡୀ ଫୁଲ
ପସରା ମେଲିଲା ବେଳକୁ
ଶରତର ଦେଖାନାହିଁ
ଭୁରୁଭୁରୁ ବାସୁନାହିଁ
ଶାରଦୀୟ ଉତ୍ସବର ମୁଖୁଡ଼ା
ବିଭୁକୃପା ମିଳୁନାହିଁ
ତୀର୍ଥାଟନ କରି
କି ମୁକ୍ତି ମିଳୁନାହିଁ
ଦୁଃଖ ଶୋକ ଯନ୍ତ୍ରଣାରୁ ।

**ହେମନ୍ତ**

ଭେସ୍ଲିନ୍, ପୋଣ୍ଡ୍ସ କ୍ରିମ୍‌ମାନେ
ଅସ୍ତବ୍ୟସ୍ତ ମାଲିସ ପାଇଁ
ଫଟା ଓଠ,
ଧୂସରିଆ ଦେହରେ;
ହେଲେ ହେମନ୍ତର ପତ୍ତା ନାହିଁ ।
ଗେଣ୍ଡୁଫୁଲ ଫୁଟିଲାଣି,
ଗଂଗଶିଉଳି ବାସିଲାଣି
ହେଲେ ଛପିଲାଣି ହିମଶୀତଳ
ଆଗଭଳି ମହକି ଉଠୁନି ଆଉ,
ପୁନେଇଁ ପରବର ମାହୋଲ ।

## ଶୀତ

ଭାରି ନିଜର ନିଜର ଲାଗୁଥିଲା
ସେଇ ଶୀତଦିନସବୁ
ଆଜି କିନ୍ତୁ ନିଜସହ
ଆତ୍ମୀୟତା ବଢ଼ାଇଲାବେଳେ
କେମିତି ଅପାଙ୍‌କ୍ତେୟତାର ବଂଧନରେ
ଖାପଛଡ଼ା ଲାଗେ
ସବୁ ଶୁଖାଶୁଖା
ବିଲ୍‌କୁଲ୍ ଏକୁଟିଆ କପୋତୀଟେ
ଗୁମୁରିଲା ପରି
ତଂଟିରେ ମାଛକଂଟା ଅଟକିଲା ପରି
ଅପୂର୍ଣ୍ଣ ରହେ ସବୁକିଛି ।
ଆଖି ଛଳଛଳ
ଯନ୍ତ୍ରଣା ଜର୍ଜରିତ ହୋଇଉଠେ
ଶୀତଦିନ ଆଜି
ଶୂନ୍‌ଶାନ୍ ଅବସନ୍ନ ଏଠି ଶୀତରାତି
କମ୍ବଳ କିଣା ସରିଲା ବେଳକୁ
ଶୀତରାତି ଉଭାନ୍ ଯଉଁଠି ।

## ବସନ୍ତ

ଋତୁରାଜ ବସନ୍ତ ତ ପୂର୍ଣ୍ଣତାର ଋତୁ
ହେଲେ ଫିକା ଆଜି ଋତୁ ଦରବାର
ଏଠି ଖାଲି ନିର୍ଲିପ୍ତ ହସ,
ସନ୍ତାପିତ ଅଶ୍ରୁଭରା ପୂର୍ଣ୍ଣ ଶତକୁମ୍ଭ
ରଂଗଛଡ଼ା ଶାଢ଼ି ପରି

ବସନ୍ତ ହସୁଛି
ଚକ୍ରବ୍ୟୂହରେ ଫସିଯାଇ
ଋତୁରାଜ ଆଜି ରକ୍ତାକ୍ତ
ମୁକ୍ତି କେବେ ମିଳିବ
ସତେଜ ଆକାଶର ତାରାମେଳେ
ଆଉ ସୁଶୀତଳ ଜହ୍ନମାମୁ କୋଳେ !

## ଗ୍ରୀଷ୍ମ

ସମୟର ବାଇଶି ପାହାଚକୁ
ଡେଇଁଡେଇଁ
ଆକ୍ରାମାକ୍ରା ହେଲାପରେ
ଗ୍ରୀଷ୍ମର ତାପ ଆଜି ନିରୁଦ୍ଦିଷ୍ଟ ।
ମୋ ନିରୋଳା ମୁହୂର୍ତ୍ତମାନଂକରେ
ନିଜକୁ ନିଜେ ବୋଧ ଦେଲାବେଳେ
ଗ୍ରୀଷ୍ମର ଶୋକାକୁଳ ପରିବେଶ
ନୀରବି ଯାଇଛି ଆଜି
ଭାଷାର ପାହାଡ଼
ମଥା ପିଟି ଫେରୁଛି
ଚହଲା ଢେଉ
ଭାଂଗି ପଡିଛି ଗ୍ରୀଷ୍ମ ଆଜି,
ଝାଉଁଳି ପଡିଛି ସାରା ସଂସାର ।

# ନଗ୍ନ କବିତା

ମୁଁ ଆଂଜୁଳା ଆଂଜୁଳା ଆବରଣ
ଘୋଡ଼େଇ ଦେଲେବି
ସେ ସେମିତି ନଗ୍ନ,
ମୁଁ ଯେତେ ଆକଟ କଲେବି
ସେ ସେମିତି ଉଲଗ୍ନ,
କାହିଁ ଆଖି ବୁଜି ଯାଉନିତ
ନଗ୍ନତା ଦେଖିବାରେ
ବରଂ ଖୋଲି ଯାଉଛି ଉତ୍ତେଜନାରେ।

ମୁଁ ତ ଘୋଡ଼େଇଚାଲିଛି ନଗ୍ନତାକୁ
ହେଲେ ସେ
ଆଣ୍ଠୁ ଉପରକୁ କରୁଛି ଇଙ୍ଗିତ
ଦେଖ ମୋତେ କରିଯାଅ ଉପଭୋଗ
ମୁଁ ପରା ତୁମ ନଗ୍ନ କବିତା।

ଯୁବ ଜରା ସଭିଏଁ ତ ଆଜି ମନରାଜି
ଯାଉନି କାହାରି ମଥାନଇଁ ସରମରେ
ନିଜେ ତ ସେ ନଗ୍ନତାରେ ମାତାଲ
ମତୁଆଲା କରୁଛି ସାରା ଦୁନିଆକୁ।

# ବାକ୍ସ ତଳର ଶାଢ଼ି

କେତେବେଳେ ଅଲକ୍ଷ୍ୟରେ
ଶୋଇ ପଡ଼ିଛି ମୁଁ
ଭାବିଭାବି କେଉଁ ଶାଢ଼ି
ମାନିବ ମୋତେ !

ଖଂଡୁଆ ପାଟର ଆସ୍ତରଣରେ
ମେଦବହୁଳ ଦେହଟା,
ଆହୁରି ଓଜନ ହୋଇ ଯିବନି ତ ?

ସପନ ଦେଖିଥିଲି ଗଲାଦିନରେ
ଶାଢ଼ିମାନଂକ ମହୋତ୍ସବରେ
ପରସ୍ତ ପରସ୍ତ ଶାଢ଼ିମାନଂକର
ଚିତ୍ର ଆଙ୍କି
ସଜାଡ଼ି ଦେଇଥିଲି ବାକ୍ସରେ ।

ଏବେ ଖୋଜିବାକୁ
ବହୁତ ସମୟ ହାତରେ
ପ୍ରଚ୍ଛଦପଟ ଅଚଳ,
ସ୍ଥିରତାର ପରିଧି ଭିତରେ
ବିବର୍ଣ୍ଣ ଦିଶୁଛି ଶାଢ଼ିସବୁ
କର୍ପୁର ବି ଯାଇଛି ଉଡ଼ି
ବାଛିବାର ଉପକ୍ରମ ଲୋଡାନାହିଁ
ଅଜାଣତେ ବଛା ସରିଛି
ବାକ୍ସ ତଳର ଶାଢ଼ି ।

# ଦର୍ପଣ

ଦର୍ପଣ ବି କଥା କହେ
ଟାଣି ଓଟାରି ପକାଏ
ପୁରୁଣା ପୃଷ୍ଠାମାନଙ୍କୁ
ସମସ୍ତଙ୍କ ସମ୍ମୁଖରେ

ଉଲଗ୍ନ ହୋଇ ମୁଁ
ଇତସ୍ତତ ହୋଇଯାଏ
ନେହୁରା ହୁଏ ମୁଁ
ଦର୍ପଣ ଆଗରେ

ପୃଷ୍ଠା ଓଲଟାଇଲେ
ତିକ୍ତତାର ସରହଦ
ପୃଷ୍ଠା ଓଲଟାଇଲେ
ଲମ୍ୱା ଫର୍ଦ୍ଦର ଦୁଃଖଦ ମୁହୂର୍ତ୍ତ

କିଏ ସଜାଡ଼ିବ
ମଲାଦିନର ଛଟପଟ ଦିନ
ଆଉ ମୂହୁର୍ତ୍ତମାନଂକୁ !

ପାରିବ କି କେହି ମଲମ ଦେଇ
ଦରଦ ସବୁକୁ ଭୁଲେଇବାକୁ
ଏସବୁ ଦର୍ପଣରେ
କିଛି ଅଛପା ନାହିଁ ।

# ଅନ୍ତର୍ଯାତ୍ରା

ପୂର୍ଣ୍ଣଛେଦ ପଡୁ ସୁରଦାସଙ୍କ ଅନ୍ଧତ୍ୱର
ଆଉ ମେଦିନୀ ଫଟାଇ
ଅନ୍ତରକୁ ଦୋହଲାଇ ଦିଅନା
ହୃଦୟର କଥାକୁ ମାନି
ସମ୍ମତି ଦିଅ ।

ନର୍ତ୍ତକୀ ହାତରେ
ମୃତ ସଂଜିବନୀ ଫଳ ଦେଖି
ମେଣ୍ଟାଇଦିଅ ଶୋଷ ।

ଅଠର ଘଣ୍ଟାର ପାଠକୁ
ବାଇଶି ଘଣ୍ଟାର ଗୋଲାମ ପାଇଁ
ଅତିମଣିଷରୁ ଫମ୍ପାମଣିଷ ହେବା କ'ଣ
ଆଇନାର ପ୍ରତିଫଳନ ।

ଅଦ୍ଭୁତ ଫଳ ଏ ମୃତ ସଂଜିବନୀ !
ଚାଂଗୁଡ଼ିରେ ଚାଂଗୁଡ଼ିଏ ଫୁଲକୁ ଜାବୁଡ଼ି ଧରି
ତତଲା ନିଃଶ୍ୱାସରେ
ଖୋଜିବାକୁ ହେବ ଇନ୍ଦ୍ରଧନୁର ରଂଗ ।

ଉପାୟ କ'ଣ
ଅଚାନକ ଆକାଶରେ କଳାବାଦଲ ଘୋଟିଗଲେ ?
ସଂଚିଥିବା ସାରା ଜୀବନର ଅଶାନ୍ତିରୁ
ଶାନ୍ତିଟିକକ ଖିନ୍‌ଭିନ୍ ହେଇଗଲେ ?

ଖାଲି ଶ୍ୱାସରୋଧର ସ୍ୱର
ଆଉ ଦୀର୍ଘଶ୍ୱାସ...
ଏଇତ ଜୀବନର ଅସ୍ତିତ୍ୱ !
ଖାଲି ଲୋଡ଼ା
ଐଶ୍ୱରିକ ହସ ଟିକକ ।

# ମନର ବିଗୁଲ

ତୁମେ କଣ ସନ୍ଧି ଆଉ ସର୍ତ୍ତରେ ବିଶ୍ୱାସ କର ?

ଅନେକ ଯନ୍ତ୍ରଣାର ବୋଝକୁ
ଜହ୍ନ ପାଖେ ସଁପି ଦେବାପରେ
ଅଯତ୍ନରେ ଫୁଟିଥିବା ଫୁଲ
ସମ୍ପୂର୍ଣ୍ଣ ପରିପ୍ରକାଶ ତ ପାଇଲାନି
ବରଂ ସହରର ମର୍କୁରୀ ଆଲୁଅରେ
ଆକର୍ଷିତ ପତଂଗମାନଂକର
ପରିଣତି କ'ଣ ହେଲା ଜାଣ ?
କର୍ଫ୍ୟୁ ଜାରି ହୋଇଗଲା
ଗୋଛାଗୋଛା ଶବ ସତ୍କାର ପାଇଁ।

ମୁଁ ଜାଣିଥିଲି ତୁମେ ମୋର ସରକାର
ତୁମେ ମୋ ଡାକରେ ବନିଯିବ ଏକାନ୍ତ ନିଜର,

କେହି ଜଣେ ଆପଣାର।
କିନ୍ତୁ ଦୃଶ୍ୟପଟ ବଦଳାଇ ଦେଲ
ଏତେ ଜଲ୍‌ଦି
ମୋ ଅପରିପକ୍ୱ ମାନସିକତାରେ ?

ପ୍ରତିକ୍ଷଣେ ମୁଁ ତୁମକୁ ବିଷଧର ସାପପରି
ଚୋଟ ମାରି ଚାଲିଲି କାହିଁକି ଜାଣ ?
ମୋ ମନରେ ଅବିଶ୍ୱାସର କୁହୁଡ଼ି
ଘୋଟି ସାରିଥିଲା
ଯେବେଠୁ ତୁମେ ଅତ୍ମଗୋପନ କରି
ଚାଲିଗଲ ତୁମ କାରିଗରୀ ନାୟିକାର ଛତ୍ରେଛତ୍ରେ
କାହିଁକି ଖଂଜିଦେଲ
ମୋ କପାଳରେ ଅଘୋଷିତ ଅଭିଶାପ ?

ତୁମଠାରେ ସମୟର ଅଭାବରେ ମୋ
ବିଷାଦ ମନ କିଂତୁ
ଟୋପାଟୋପା ଲୁହକୁ ସମର୍ପି ଦେଇଥିଲା
ଶ୍ରାବଣର ବର୍ଷାରେ
ଖୋଜୁଥିଲି ଚିରକାଳ ସୁଖର ଠିକଣା
ତୁମର ଆଖି ଦିଓଟିରେ
ହେଲେ ତୁମେ ଥିଲ ଆନମନା ତୁମ ପ୍ରିୟାଠାରେ
ବାନ୍ଧୁଥିଲ ବସା ତୁମେ
ଆଦିମ ସୁଖ ଅବା ପ୍ରିୟାର ସ୍ମୃତିରେ।

## ନିଜ ସହ ବାର୍ତ୍ତାଳାପ

ନିଜ ସହ ତମାମ ଜନ୍ମର ସମ୍ପର୍କ
ଅଜାଣତରେ ବଂଚିଛି କମ୍
ମରିଛି ଅନେକ ଥର
କୁଶ ପୁତ୍ତଳିକାରେ ନିଆଁ ଲାଗିଲା ପରି
ମୁଁ ଜଳିଯାଇଛି କେଉଁଠି କେମିତି
ଅଶୁଭ ମୁହୂର୍ତ୍ତମାନଙ୍କରେ
ଭାଙ୍ଗିରୁଜି ହୋଇଯାଇଛି ଦୁଇଗୋଡ଼
ପୁଣି ଝାଡିଝୁଡି ହୋଇ
ସାମ୍ନାରେ ହୋଇଛି ଛିଡ଼ା

ଆଖି କୋଣରେ ଲୁଚେଇ ରଖିଛି
ଅଯୁତ ସପନ
ଆଉ ଆପଣା ସ୍ୱରର ମହୋଦଧି
ଉତ୍ତର ଯୌବନର ଉପଢୌକନରେ ବି ଖୋଜିଛି

ମୋ ସତ୍ତାର ପରିଚୟ
ପଚାରିଛି ନିଜକୁ ନିଜେ
ଚଳଚଂଚଳ ଜହ୍ନରାତିର ଚହଲା ଢେଉରେ
କାହିଁ ଗଲା ସେଦିନ ଯେବେ ମୁଁ
ମର୍କଟୀରୁ ହୋଇଥିଲି ରମ୍ୟା
ଧାଇଁଯାଇ ଜାବୁଡ଼ି ଧରିଛି
ମୋ ମଲା ଅତୀତକୁ
ପାରୁନାହିଁ ମୁକୁଳାଇ ମୋତେ
ଘୂରିବୁଲୁଛି ମୁଁ ମୋହରି ଭିତରେ।

# ମିଛ ମଣିଷ

ଉଈହୁଂକା ପରି ନୀରବତା
ଆଡ଼୍ କରିଦେଲା ନିର୍ମମ ଭାବରେ
ହଜିଗଲା ସମୟ ସ୍ରୋତରେ
ସତ୍ୟ ଶାନ୍ତି ସଂହତିର ଅମୃତମୟ ସ୍ମୃତି
ପାଇ ହରାଇଲା ପରି ଦୁଃଖ
ଏ ତ ନିୟତିର ନିଷ୍ପତ୍ତି।

ସମ୍ପର୍କ- ଧୂଳି ଡିଅଣର ଏକ
ମିଛମିଛ ଖେଳ,
କିଛି ନଖାଇ
ସବୁ ଖାଇବାର ଅପବାଦ
ସ୍ୱାଇନ୍-ଫ୍ଲୁ ପରି ଜୀବାଣୁର ବ୍ୟାପକତା
ବସା ବାନ୍ଧେ ଅମ୍ଳଜାନର
ପତଳା ସିଲିଂଡରରେ

କିଏ ଜାଣେ କେତେବେଳେ
ସରିଯିବ ଅମ୍ଳଜାନ
ଆଉ ହଜିଯିବ
ମୁଖାପିନ୍ଧା ମଣିଷର
ସତ ମିଛ ଫେଣ୍ଟାଫେଣ୍ଟିର
ନିଷ୍କପଟ ମନଟିଏ ।

# ସ୍ରଷ୍ଟା ଓ ସୃଷ୍ଟି

**ସ୍ରଷ୍ଟା**

ସ୍ରଷ୍ଟାମାନେ ନୀରବି ଯାଆନ୍ତି ନା
ନୀରବି ଯାଇଥିବା ମଣିଷମାନେ
ସ୍ରଷ୍ଟା ପାଲଟି ଯାଆନ୍ତି !
ଉଦରସ୍ଥ କରିଯାଆନ୍ତି ସ୍ରଷ୍ଟାମାନେ
ଅସନା ଗାଳିକୁ
ଆଉ ଭାଂଗି ଯାଇଥିବା ମେରୁଦଂଡକୁ
ସଳଖିବାକୁ ଚେଷ୍ଟା କରନ୍ତି
ନିଜର ଦାୟିତ୍ୱବୋଧ ପାଇଁ !

**ସୃଷ୍ଟି**

ସୃଷ୍ଟିମାନେ ସବୁବେଳେ
ଚଳଚଂଚଳ ହରିଣୀ ପରି
କୁଳୁକୁଳୁ ଝରଣା ପରି ବହି ଯାଆନ୍ତି ।

ଆୟୁଷ୍ମାନ ଆଉ ଆୟୁଷ୍ମତୀ ହୋଇ
ରହି ଯାଆନ୍ତି।

ବାଲିଘର ଉଜୁଡ଼ିଲେ
ଯାଏ କେତେ, ଆସେ କେତେ ?
ତାଂକ ମଥାପରେ ସ୍ରଷ୍ଟାର ଆକାଶଟେ
ନିରାପତ୍ତା ଦେଉଥାଏ
ସଂଜ ସକାଳେ
ଆଶିଷର ବାରି ଝରୁଥାଏ
ସଦାବେଳେ।

# ତୁମେ ଚାଲିଗଲା ପରେ

ଛାଡ଼ିଗଲା ଲାଜ ମୋର
ବାହାରିଲି ଦାଂଡକୁ
ଆକାଶକୁ ଅନେଇଲି,
ଛାଡିଲିନି ଦୀର୍ଘଶ୍ୱାସ;
ଆଗକୁ ଆଗକୁ ଆଗେଇ ଚାଲିଲି
ଠଣାରେ ଥିବା
ଚୁଂଗିର ଆଲୁଅକୁ ପଛ କରି ।

ଆକାଶ ବି ନୀରବିଗଲା
ବର୍ଷା ବି ଝରୁଥିଲା
କୋହ ମୋର ଉଠୁଥିଲା ଗୁମୁରି ଗୁମୁରି ।

ଅନାଇଲି ଚାରିଦିଗ,
ନଥିଲେ କେ ପାଶେ

ଅଂଧାରକୁ ଆବୋରି ବସିଲି
ନିଜ ସଂଗେ ସଂପର୍କ ଗଢ଼ିଲି
ଖୋଜିଲି ନିରାପଦ ଆଶ୍ରୟଟିଏ।

ଭାବିଲି ତୁମ ପରି
ଆଉଁସି ଦେବ କେହି
ମୋ ଅସଜଡ଼ା ବାଳକୁ
ଆପଣାର କରିନେବ
ମୋ ମନର ଦୁଃଖକୁ।

# ମା

ବତୁରା ମାଟିପରି ମା'ର ମମତା
ଆପଣାକୁ ବିଛେଇଦିଏ
ଖରାବର୍ଷା ଝଡ଼ଝଂଜାର
ନିର୍ଭର ପ୍ରତିଶ୍ରୁତି ଦେଇ,
ଘଂଟ ଘୋଡ଼ାଇ ପକାଏ
ସାତଖୁଣ ମାଫ କରିଦିଏ
ଅବୁଝାପଣ ବଶୀଭୂତ ହୋଇଯାଏ
ତା ଶୀତଳ ଛାୟାରେ।
କ୍ଷତାକ୍ତ ଉପଶମ ହୋଇଯାଏ
ଦୁଃଖ ଭିତରୁ ଫୁଟିଉଠେ
ସୁଖର ସଜ ସଜ ମୁହଁ
ତା ପଣତ କାନିରେ ଢାଂକି ହୋଇଯାଏ
ସମଗ୍ର ପୃଥିବୀ
ବହିଯାଏ ସୁଖର ବୈତରଣୀ।

# ଆମ ଗାଁ ଶୀତ ରାତି

ଧସେଇ ପଶିଯାଏ ଶୀତରାତି
ଆମ ଗାଁ କୁ
ଭାଗବତ ଟୁଂଗିରୁ ଭାସିଆସେ
ଖଂଜଣି ଶବଦ
ମିଂଜିମିଂଜି ଡିବିରି ଆଲୁଅରେ
ସାରା ଦୁନିଆଟା ମହକି ଉଠେ।

ଅନ୍ଧାରରେ ଝଲସୁଥାଏ ଶୀତରାତି
ଆମ ଗାଁରେ
ସିରିସିରି ଶୀତୁଆ ପବନେ
ନିଆଁପୁଆଁ ମଜା
ଆଉ ଟୁପୁରୁଟାପୁରୁ ସଂସାରଯାକର ଖବର
ଢେଂକିଠୁଁ ଢେଂକାନାଳ ଯାଏଁ
ଚାଲିଥାଏ ନିତି ପାର୍ବଣର ମସୁଧା।

ଆମ ଗାଁ ଶୀତରାତି ଦେଖିନାହିଁ
ଈର୍ଷାର ଢେଉ
ଏ ତ କଥା କୁହା ଗାଁ'ଟେ
ଏଠି ଚାରୁଅପାର
ମାଣବସା ଝୋଟି ଚିତା ପଡ଼େ
ପଡ଼େ ପୁଣି ଡାକରା କନିଆ ମା'କୁ
ଗରମ ଗରମ କଂସେ ଚା
ଆଉ ଅଂଟିଏ ମୁଢ଼ି ଦେବାକୁ।

ବଗୁଲିଆ ଟୋକାସବୁ ଲୁଚକାଳି ଖେଳନ୍ତି
ଝାପ୍‌ସା ଝାପ୍‌ସା ଜହ୍ନ ଆଲୁଅରେ
ଧାନ ପୁଂଜି ସତେକିବା
ଛୋଟଛୋଟ ପାହାଡ଼ ମଝିରେ
ଦନେଇ ମଉସା ଠେଲା ପଛେ ପିଲାଂକର ଭିଡ଼
ବରା ଗୁଲୁଗୁଲା ବାସନାରେ।

ଅନ୍ଧାର ଓ ଆଲୁଅର ଖେଳ ଖେଳେ
ଆମ ଗାଁ ଶୀତରାତି,
ଏଠି ନ ଥାଏ ନିର୍ଜ୍ଜନତା
କେବେ ଏଠି ମୁନି ଯାତ ତ
କେବେ ପୁଣି ପାର୍ବଣ
ଭାଂଗୁଥାଏ ନିର୍ଜ୍ଜନତା ଆଉ ନୀରବତା।



**କୁମୁଦିନୀ ଜୀ** ଓଡ଼ିଆ କବିତା ଜଗତର ଅନ୍ତରାଳରେ ଜୀବନ ଓ ସ୍ୱପ୍ନ ସହ ସମାନ୍ତରାଳ ଭାବେ ବଂଚୁଥିବା ଜଣେ ଖିଆଲି କବି। ତାଙ୍କର ପ୍ରଥମ କବିତା ସଂକଳନ ପ୍ରକାଶିତ ହେବାର ବେଶ୍‌କିଛି ବର୍ଷପରେ ପ୍ରକାଶ ପାଉଛି ଦ୍ୱିତୀୟ ସଂକଳନ 'ହେଁସ ଭିତରେ ଶୀତରାତି'। ସଂସାର ଓ ସଂପର୍କର ଚାପ ଯେତେ ତୀବ୍ର ହେଉନା କାହିଁକି, ମନରେ ରଂଗ ଥିଲେ ହୃଦୟ ଆପଣାଛାଏ ଖୋଲିଯାଏ। ଶବ୍ଦର କାନ୍‌ଭାସ ଉପରେ ଆଙ୍କିଦିଏ ଚେତନାର ନୂଆନୂଆ ଛବି। କୁମୁଦିନୀ ଜୀଙ୍କର ପ୍ରତିଟି କବିତା ତାଙ୍କ ଚେତନାର ପ୍ରତିବିମ୍ବ। ସଂକଳନଟି କବିତାଭୁକ୍ ପାଠକପାଠିକାଙ୍କୁ ଉଚକିତ କରିବ ବୋଲି ଆଶା।

a timepass publication
POETRY
cover : saroj bal

